# ପୃଥିବୀର ଲୋକକଥା

( ଉତ୍ତର ପ୍ରଦେଶ ଆଦିବାସୀ ଲୋକକଥା)

( ଦ୍ୱିତୀୟ ଭାଗ )

**ଶ୍ରୀ ଲକ୍ଷ୍ମୀଧର ମହାନ୍ତି** ବି. ଏସ୍. ସି., ଏଲ୍. ଏଲ୍ ବି,
ଅବସରପ୍ରାପ୍ତ ଚିଫ୍ ଜୁଡ଼ିସିଆଲ ମାଜିଷ୍ଟ୍ରେଟ୍

**ଶ୍ରୀମତୀ ଅନ୍ନପୂର୍ଣ୍ଣା ମହାନ୍ତି** ଏମ୍. ଏ. ବି. ଇଡ଼.

**ନୀଳକଣ୍ଠେଶ୍ୱର ଶିକ୍ଷା ପ୍ରକଳ୍ପ**

# PRUTHIBIR LOKA KATHA

( Uttar Pradesh Adibasi Lokakatha )

(Dwitiya bhag)

# ପୃଥିବୀର ଲୋକକଥା

( ଉତ୍ତର ପ୍ରଦେଶ ଆଦିବାସୀ ଲୋକକଥା )

ଦ୍ୱିତୀୟ ଭାଗ



ପ୍ରକାଶକ :

**ନୀଳକଣ୍ଠେଶ୍ୱର ଶିକ୍ଷା ପ୍ରକଳ୍ପ**

ବାଙ୍କବଜାର ରୋଡ଼, କଟକ-୧

ପ୍ରଥମ ପ୍ରକାଶ :

ଡିସେମ୍ବର ୪, ୧୯୮୭

ମୁଦ୍ରାକର :

ମା' ସନ୍ତୋଷୀ ପ୍ରେସ

କାଜି ବଜାର, କଟକ-୧

ମୂଲ୍ୟ : ଟ ୩-୦୦

ଁ ଶ୍ରୀଧର ମହାପାତ୍ର

ଜନ୍ମ : ୨ । ୯ । ୧୯୦୯
ମୃତ୍ୟୁ : ୨୫ । ୧୧ । ୧୯୮୭

ଓଡ଼ିଆ ସାହିତ୍ୟର ଅଭିବୃଦ୍ଧି ଓ ପ୍ରସାର ପାଇଁ ଆପଣଙ୍କ କଳ୍ପନା ମହତ୍ ।

ବାସ୍ତବରେ ପରିଣତ କରିବା ପାଇଁ ଆପଣଙ୍କର ପ୍ରଗାଢ଼ ଉଦ୍ୟମ ଅବିସ୍ମରଣୀୟ ।

ଆପଣ ଆଉ ବ୍ୟକ୍ତି ବିଶେଷ ନୁହନ୍ତି । ନିଜକୁ ଏକ ଅନୁଷ୍ଠାନ କରି ଚାଲିଗଲେ ।

ଆଜି ଆପଣଙ୍କର ଦଶାହ ।

ଆପଣଙ୍କର ଆତ୍ମାର ସଦ୍‌ଗତି ହେଉ । ଏହାହିଁ ଆମର ପ୍ରାର୍ଥନା ।

ଲକ୍ଷ୍ମୀଧର ମହାନ୍ତି
ଅନ୍ନପୂର୍ଣ୍ଣା ମହାନ୍ତି
୪ । ୧୨ । ୮୭

# ସୂଚୀପତ୍ର


୧ । ଦୁଇଭାଇ ଓ ସେମାନଙ୍କର ଧୂର୍ତ୍ତ ମାଲିକ ୧
୨ । ବାଲୁଆ ଓ ହରିଣ ୬
୩ । ଏକା ଗୋଇଠାକେ କୁଜା ସୁନ୍ଦର ୯
୪ । କାହା ଭାଗ୍ୟ ୧୧
୫ । ମେଣ୍ଢା ଓ ବାଲୁଆ ୧୩
୬ । ମଧ୍ୟରାତିର ଭୋଜ ୧୬
୭ । ସୁନ୍ଦରୀ ଓ ଚତୁରୀ ବୋହୂ ୧୮
୮ । ବଜ୍ର ବଡ଼ ମଧୁର ୨୩
୯ । କୁଅର ବି କାନ ଅଛି ୨୬
୧୦ । ଚତୁର ଠେକୁଆ ୨୯
୧୧ । ସୁନା ପୋଖରୀର ଅଦ୍ଭୁତ ଶକ୍ତି ୩୧
୧୨ । ମାଙ୍କଡ଼ ସୁଯୋଗ ହରାଇଲା ୩୪
୧୩ । ଚତୁର ବାଳକ ଓ ରାକ୍ଷସ ୩୬
୧୪ । ଅସରା ଗପ ୪୧
୧୫ । ବାଘ ଓ ସିପାହୀ ୪୬
୧୬ । ପ୍ରତାରଣା ପ୍ରତାରଣାକୁ ହିଁ ସୃଷ୍ଟି କରେ ୪୯
୧୭ । ଚତୁର ଛେଳି ୫୨
୧୮ । ବାଳକ ଓ ମାଜିକ୍ ପାବ ୫୬




# ଦୁଇ ଭାଇ ଓ ସେମାନଙ୍କର ଧୂର୍ତ୍ତ ମାଲିକ

## (ଭୁଟିଆ ଲୋକ କଥା)

ଅନେକ ଦିନ ତଳେ ଗୋଟିଏ ଗାଁରେ ଦୁଇ ଭାଇ ରହୁଥିଲେ । ବଡ଼ଟି ଚାଲାକ । ଧୂର୍ତ୍ତ । କିନ୍ତୁ ଅଳସୁଆ । କିଛି କାମ କରେ ନାହିଁ । ଖାଲି ବସି ଆରାମ କରେ । ସାନଟି ବୋକା, କିନ୍ତୁ କର୍ମଠ । ଦିନ ରାତି ସେ ଖଟେ । ଘରଯାକର ସବୁ କାମ ସେ ଉଠାଇ ନିଏ ।

ବଡଭାଇର ଢଙ୍ଗରଙ୍ଗ ସାନ ମନକୁ ପାଏ ନାହିଁ । ଦିନକୁ ଦିନ ସେ ବୀତସ୍ପୃହ ହୋଇଉଠେ । ଶେଷକୁ ସେ ସ୍ଥିର କଲା—ଘର ଛାଡ଼ି ଚାଲିଯିବ । ବିଦେଶରେ ଚାକିରି କରିବ । ଦେଖିବ, ବଡଭାଇ କେମିତି କାମ ନ କରି ଆରାମ କରିବ ।

ସେ ଆଉ ଡେରି କଲା ନାହିଁ । ଘରୁ ଗୋଡକାଟି ବାହାରି ପଡିଲା । କେଉଁଠିକୁ ଯିବ, ସେ ଠିକ୍ କରି ଜାଣିନଥାଏ । କିନ୍ତୁ ଚାକିରିଟିଏ କରିବାକୁ ସେ ବ୍ୟାକୁଳ । ବାଟରେ ଯାହାକୁ ଦେଖେ, ସେ ତା ମନ କଥା କହେ । ବାଟରେ ତାର ଜଣେ ଲୋକ ସାଥିରେ ଦେଖାହେଲା । ସେ ବଡ ଧୂର୍ତ୍ତ । ସେ ଖାଲି ଚାକରକୁ ଠକେ ନାହିଁ ଅପଦସ୍ତ କରିବା ତାର ଅଭ୍ୟାସ । ସାନ ଭାଇଠାରୁ ଚାଲାକି କରି ସବୁ କଥା ଆଦାୟ କରିଦେଲା । ତାପରେ ସେ କହିଲା—'ମୋ ପାଖରେ ଚାକିରି ଅଛି । କିନ୍ତୁ ସର୍ତ୍ତ ଗୋଟିଏ । ମୁଁ ଯାହା କହିବି,ସେଥିରେ ଯଦି ତୁମେ କ୍ଷୁଣ୍ଣ ହେବ, ତାହା ହେଲେ ମୁଁ ତମର ନାକ କାଟି ଦେବି ।

ଆଜି ମୁଁ ଯଦି ସନ୍ତୁଷ୍ଟ ହୁଏ, ତାହାହେଲେ ମୋର ବି ନାକ କଟା ହେବ ।”

ସାନଭାଇ ତ ଚାକର କରିବାକୁ ଉଚ୍ଛନ୍ନ । ଭଲ ମନ୍ଦ ବିଚାର ବି ତାର ନଥିଲା । ସେ ଧୂର୍ତ୍ତ ମାଲିକ କଥାରେ ରାଜି ହୋଇଗଲା । ମାଲିକଟି ତାକୁ ସାଥିରେ ଧରି ତା ଘରକୁ ଗଲା ।

ପରଦିନ ସକାଳ । ମାଲିକଟି ନୂଆ ଚାକରକୁ କାମ କରିବାକୁ ବିଲକୁ ପଠାଇଲା ବେଳେ କହିଲା—“ତୁ ବିଲକୁ ଯା, ମୁଁ ତୋ ପାଇଁ ଖାଇବା ପଠାଉଛି ।”

ଚାକର ଚାଲି ପରେ ମାଲିକଟି, ଚାକରର ଖାଇବା ଜିନିଷ ଗୋଟିଏ ପାତ୍ରରେ ରଖି ତାକୁ ଘୋଡଣୀରେ ଘୋଡାଇ ଦେଲା । ଗୋଟିଏ ବୋତଲରେ ତା ପାଇଁ ଚା ରଖିଲା । ବୋତଲକୁ ଠିପିରେ ବନ୍ଦ କଲା । ଗୋଟିଏ ଚାକରାଣୀ ହାତରେ ଖାଇବା ଜିନିଷ ଓ ଚା’ ଚାକର ପାଖକୁ ପଠାଇ ଦେଲା । କିନ୍ତୁ ଚାକରାଣୀକୁ ମାଲିକର ନିର୍ଦ୍ଦେଶ—ସେ ଚାକରକୁ କହିବ ଯେ, ଚାକରଟି ଘୋଡଣୀ ନଖୋଲି ଖାଦ୍ୟ ଖାଇବ ଓ ଠିପି ନ ଖୋଲି ଚା ପିଇବ ।

ଚାକରାଣୀ ମାଲିକର କଥାନୁସାରେ ଖାଇବା ଜିନିଷ ଓ ଚା ଚାକର ଆଗରେ ଥୋଇଦେଲା । ମାଲିକ ଯାହା କହିଥିଲା, ତା ବି କହିଲା । ଚାକରଟି କିଛି ବୁଝିପାରିଲା ନାହିଁ । ଘୋଡଣୀ ନ ଖୋଲି ଖାଦ୍ୟ ଖାଇବା ଆଉ ଠିପି ନ ଖୋଲି ଚା ପିଇବା ଏକାନ୍ତ ଅସମ୍ଭବ । ତେଣୁ ସେ ଖାଇବା ଜିନିଷ ଓ ଚା ଚାକରାଣୀ ହାତରେ ଫେରାଇ ଦେଲା ।

ସନ୍ଧ୍ୟାବେଳକୁ ସାନ ଭାଇଟି କାମରୁ ଫେରିଲା । ନଖାଇ ନ ପିଇ ମୁହଁ ତାର ଶୁଖି ଯାଇଥାଏ । ମାଲିକ ତାକୁ ଦେଖି ପଚାରିଲା

"ଘୋଡ଼ଣୀ ନ ଖୋଲି ଖାଦ୍ୟ ଖାଇବାକୁ ଓ ଠିପି ନ ଖୋଲି ବୋତଲରୁ ରସ ପିଇବାକୁ ଖବର ଦେଇଥିଲି । ତୁ ଖାଦ୍ୟ ଖାଇନୁ କି ରସ ପିଇନୁ । ମୋ କଥାରେ ତୁ ଖୁବ୍ କ୍ଷୁବ୍ଧ ହୋଇଛୁ ?"

ସାନ ଭାଇଟି ସରଳ । ଆଗପଛ କିଛି ଭାବିଲା ନାହିଁ । ମାଲିକ କଥାରେ ହଁ ମାରିଦେଲା । ତାପରେ ମାଲିକ କହିଲା—"ଚୁକ୍ତିର ସର୍ତ୍ତ ଅନୁସାରେ ତୋର ନାକ କଟା ହେବ ।" ତାପରେ ଡେରି ନ କରି ସାନ ଭାଇର ନାକ କାଟି ପକାଇଲା ।

ନଜର ନାକ ନାହିଁ । ମୁହଁଟା ଅସନା । ଏପରି ଅବସ୍ଥାରେ ଦ୍ୱାର ଦ୍ୱାର ବୁଲି ଚୁକ୍ତି ଖୋଜିବା ଅସମ୍ଭବ । ତେଣୁ ସାନ ଭାଇଟି ଘରକୁ ଫେରିଗଲା ।

ଘରେ ପହଞ୍ଚି ସବୁ କଥା ବଡ଼ ଭାଇ ଆଗରେ କହିଲା । ଏକଥା ଶୁଣି ବଡ଼ ଭାଇ ନିଆଁ । ପ୍ରତିଶୋଧ ନେବା ପାଇଁ ସେ ପ୍ରସ୍ତୁତ । ଘରୁ ଶୀଘ୍ର ବାହାରି ପଡ଼ିଲା । ଅଳ୍ପ ସମୟ ଭିତରେ ସେ ତାର ସାନ ଭାଇର ମାଲିକ ଘରେ ହାଜର । ମାଲିକକୁ ଚୁକ୍ତି ଦେବାକୁ ତାର ଏକାନ୍ତ ଅନୁରୋଧ ।

ମାଲିକଟି ଭାବିଲା—ଚୁକ୍ତିଟି ଆପେ ଆପେ ଜୁଟିଛି । ତା ପାଖେ ଚୁକ୍ତି କରିବାକୁ ଚୁକ୍ତିଟିର ଭାରି ଇଚ୍ଛା । ତେଣୁ ତାକୁ ସିଧା ମନା କରିବାଟା ବିବେକର କାମ ହେବ ନାହିଁ । ବରଂ ତାର ତ ସର୍ତ୍ତ ଅଛି । ସେ ଯଦି ସେଥିରେ ରାଜି ହୁଏ, ତାକୁ ସେ ରଖିବା ଉଚିତ ହେବ । ତାପରେ ସେ ଚାର ସର୍ତ୍ତ କଥା ବଡ଼ ଭାଇକୁ କହିଲା ।

ବଡ଼ ଭାଇ ସବୁ ତ ଜାଣିଶୁଣି ଆସିଛି । ବେରାଜି ହେବାର ତାର ପ୍ରଶ୍ନ ଉଠୁନାହିଁ । ତେଣୁ ସେ ସମ୍ମତି ଜଣାଇ ଦେଲା । ଏଥର ମାଲିକଟି ଭାରି ଖୁସି ।

ପରଦିନ ସକାଳ । ମାଲିକର ଆଦେଶରେ ବଡ ଭାଇ ବିଲକୁ ଗଲା । କାନ୍ଧରେ ତାର ଲଙ୍ଗଳ । ଆଗେ ଆଗେ ବଳଦ । ବିଲରେ ପହଞ୍ଚି ହଳ ଯୋଚି ଦେଲା । କିଛି ସମୟ ପରେ ଚାକରାଣୀ ସେଠି ପହଞ୍ଚି କହିଲା—"ତମ ପାଇଁ ଖାଇବା ଜିନିଷ ଢୋଡ଼ଣୀ ଥିବା ପାତ୍ରରେ ଆଉ ଚା ଠିପି ଦିଆ ବୋତଲରେ ଆଣିଛି । ତୁମେ ଢୋଡଣୀ ନ ଖୋଲି ଖାଦ୍ୟ ଓ ଠିପି ନଖୋଲି ଚା ପିଇବ । ଏହା ମାଲିକଙ୍କର ଆଦେଶ ।"

ଏସବୁ କଥା ବଡ ଭାଇ ଆଗରୁ ଜାଣିଥିଲା । ତେଣୁ ସେ ବିଚଳିତ ହେଲା ନାହିଁ । ବରଂ ଧୀରସ୍ଥିର ଭାବରେ ଚାକରାଣୀକୁ ଖାଦ୍ୟ ଓ ଚା ଫେରେଇ ନେବାକୁ ଅନୁରୋଧ କଲା ।

ବେଳ ଆଖର ହେବାରୁ ସେ ହଳ ଫିଟାଇଲା । ଗୋଟିଏ ବଳଦକୁ ମାରି ମାଂସ କଲା । ହଳକୁ ଭାଙ୍ଗି କାଠ କଲା । ତାପରେ ସେଇଠି ତାକୁ ସେ ରାନ୍ଧି ଖାଇଲା । ସେ ଘରକୁ ଫେରୁ ଫେରୁ ରାତି ଅଧ । ମାଲିକଟି ଚେଇଁ କରି ବସିଥାଏ । ମାଲିକ କିଛି କହିବା ପୂର୍ବରୁ ଚାକରଟି କହିଲା—"ମୁଁ ଯାହା କଲି, ସବୁ ଶୁଣିଥିବ । ମୋ କାମରେ ତୁମେ କ୍ଷୁବ୍ଧ ହେଲ କି ?"

"ହଁ" ମାତ୍ର ମାଲିକଟି ମନେ ମନେ ଭାବିଲା—ଏ ଚାକରଟି ଅତ୍ୟନ୍ତ ଧୂର୍ତ୍ତ ।"

ପରଦିନ ସକାଳ । ମାଲିକଟି ଚାକରକୁ ଧରି ବଣକୁ ବାହାରିଲା । ବଣରେ ଚାକରକୁ ପ୍ରାଣରେ ମାରି ଦେବାକୁ ତାର ମତଲବ । ସେଥିପାଇଁ ଡେରି ତ ହେବ । ତେଣୁ ସାଥିରେ ପୁରି କଚୁରି ଖାଇବାକୁ ଧରି ଥାଏ । ମାଲିକଟି ଚପଲ ପିନ୍ଧି ଘରୁ ବାହାରି ପଡ଼ିଲା । ଘର ସରହଦ ପାର ନ ହେବା ପୂର୍ବରୁ ତାର ଖିଆଲ

ହେଲା—ଚଟି ପିନ୍ଧି ଜଙ୍ଗଲକୁ ଯିବା ଉଚିତ ହେବ ନାହିଁ । ଯୋତା ପିନ୍ଧି ଗଲେ ଭଲ ହେବ । ତେଣୁ ସେଇଠି ଠିଆ ହୋଇ ଶୂକରକୁ କହିଲା—"ମୋ ଯୋତାହଳକ ଘରୁ ନେଇ ଆସିବୁ ।

ଶୂକରଟି ଘରେ ପହଞ୍ଚି ଦେଖିଲା—ମାଲିକର ଦୁଇଟି ସ୍ତ୍ରୀ । ସେତ ବଦମାସୀ କରିବାକୁ ଆସିଛି । ତେଣୁ ଯୋତା ନ ମାଗି ସାନ ସ୍ତ୍ରୀକୁ କହିଲା—"ମାଲିକ ତମର ନାକ ମାଗୁଛନ୍ତି, ଦିଅ ।" ନାକ ଦବ ନାହିଁ ବୋଲି ସ୍ତ୍ରୀଟି ମନା କରିବାରୁ, ଶୂକରଟି ପାଟି କଲା —"ସେ ଦଉ ନାହାନ୍ତି ।" ମାଲିକଟି ସିଆଡୁ ପାଟିକଲା-- "ତାକୁ ଦେଇଦିଅ ।" ସାନ ସ୍ତ୍ରୀର ଆଉ ଉପାୟ ନଥିଲା ସ୍ୱାମୀ ତାର ଶୂକରକୁ ନାକ କାଟିବାକୁ ପଠାଇଛନ୍ତି, ଭାବି ମନ ଦୁଃଖ କଲା । ଶୂକରଟି ନିର୍ଦ୍ଦୟ ଭାବରେ ସାନ ସ୍ତ୍ରୀର ନାକ କାଟି ପକାଇଲା । ତା'ପରେ ବଡ଼ ସ୍ତ୍ରୀ ପାଖକୁ ଯାଇ ନାକ କାଟିବାକୁ ଚାହିଁଲା । ସେ ବି ମନା କଲା । ପୁଣି ଏଡ଼େ ପାଟିରେ ମାଲିକକୁ କହିଲା—"ମୁଁ ଜମା ଗୋଟେ ପାଇଲି ।" ମାଲିକଟି ଭାବିଲା—ଶୂକରକୁ ପଟେ ଯୋତା ଦିଆଗଲା । ତେଣୁ ସେପଟୁ ସେ ବଡ଼ ପାଟିରେ କହିଲା—ତାକୁ ଅନ୍ୟଟି ବି ଦେଇଦିଅ ।" ଶୂକରଟି ହେଳା କଲା ନାହିଁ । ବଡ଼ ସ୍ତ୍ରୀର ନାକଟି ବି କାଟି ପକାଇଲା । ଦିପଟ ଯୋତା ଧରି ସେ ମାଲିକ ପାଖକୁ ଧାଇଁଲା । ମାଲିକ ଓ ଶୂକର ଜଙ୍ଗଲକୁ ଗଲେ ।

ମାଲିକର ତ ଶିକାର ହେଉଛି ଆଳ । ତେଣୁ ଡେରି ହେବା ସ୍ୱାଭାବିକ । ଜଙ୍ଗଲରେ ରାତି ହୋଇଗଲା । ରାତିଟା ରହିବା ପାଇଁ ଗୋଟାଏ ପାହାଡ଼ ଶିଖ ଦେଶକୁ ଗଲେ । ତା'ପରେ ଶୋଇବାର କଥା । ମାଲିକ ଭାବିଲା—ଶୂକରଟି ପାହାଡ଼ ଧାଡ଼ରେ ଶୋଇଲେ, ରାତିରେ ସେ ଠେଲି ଦେବ । ଶୂକରଟି ପାହାଡ଼ରୁ ଗଡ଼ି ଗଡ଼ି କେଉଁ ଅତଳ ଗହ୍ୱରରେ ପଡ଼ିବ, କହିହେବ ନାହିଁ । ତାର କଣ୍ଟା ବି ଯିବ ।

ସେଥିପାଇଁ ସେ କହିଲା—"ମୁଁ ବହୁତରେ ଭୟଙ୍କର ସ୍ୱପ୍ନ ଦେଖେ । ଉଠି ବଉଳେଇ । ପାହାଡ଼ ଦାଡ଼ରେ ଶୋଇଲେ ମୋର ବିପଦ ଅଛି । ମୁଁ ଦାଡ଼ରେ ଶୋଇବି ନାହିଁ ।

ଶୂକରଟି ଜାଣିଶୁଣି ପ୍ରତିବାଦ କଲା ନାହିଁ । ସେ ପାହାଡ଼ ଦାଡ଼ରେ ଶୋଇବାକୁ ରାଜିହୋଇ ଶୋଇଗଲା । ତା' ପାଖକୁ ମାଲିକ । ସେମାନେ ତ ପାହାଡ଼ ଜଙ୍ଗଲ ବୁଲି ବୁଲି ହାଲିଆ ହୋଇଥିଲେ । ବିଛଣା ଧରୁ ଧରୁ ମାଲିକଟି ଶୋଇ ଘୁଙ୍ଗୁଡ଼ି ମାରିଲା । ଏହି ସୁଯୋଗରେ ଶୂକରଟି ତା ଶୋଇବା ଜାଗାରେ ତକିଆଟିଏ ରଖିଦେଲା । ଗଛରେ ଚଢ଼ିଗଲା । କିଛି ସମୟ ପରେ ମାଲିକର ନିଦ ଭାଙ୍ଗିଗଲା । ସେ ସ୍ୱପ୍ନ ଦେଖିବାର ଛଳନା କରି ଶୂକର ବୋଲି ଭାବି ତକିଆକୁ ଠେଲି ଦେଲା । ଶୂକରଟି ପାଟିକରି କହିଲା—"ମୁଁ ସବୁ ଦେଖୁଛି ।"

ତା'ପର ଦିନ ସକାଳେ ସେମାନେ ମାଲିକର ଘରକୁ ଫେରିଲେ । ନିଜ ସ୍ତ୍ରୀ ଦୁହିଁଙ୍କର ନାକ ନଥିବା ଦେଖି ମାଲିକଟି ନିଆଁ । ତା'ପରେ ସେ ଶୂକରକୁ ପଚାରିଲା—"ଏସବୁ କାଣ୍ଡ କିଏ କଲା ?"

ଚାକରଟି ବିନମ୍ର ଭାବରେ କହିଲା—"ଆଜ୍ଞା । ସେମାନଙ୍କ ନାକ ମୁଁ କାଟି ନେଇଛି । ଆପଣ ଏଥିପାଇଁ ବିରକ୍ତ କି ?"

ମାଲିକ ତ ରାଗିଥିଲା । ଏ ପ୍ରଶ୍ନ ଶୁଣି ଆହୁରି ରାଗିଯାଇ କହିଲା—"ଏଥିରେ ପୁଣି ପଚାରିବାର ଅଛି ?"

"ତାହାହେଲେ ମୋତେ ତମର ନାକ କାଟିବାକୁ ହେବ ।" ଏତକ କହି ମାଲିକର ନାକ ସେ ଶୀଘ୍ର କାଟି ପକାଇଲା ।

ତା'ପରେ ସେ ତାର ଘରକୁ ଫେରିଲା ।

***

## ବଲୁଆ ଓ ହରଣ

(ବୃକ୍‌ସା ଲୋକକଥା)

ବଲୁଆ ଓ ହରଣ । ଘନଷ୍ଟ ବନ୍ଧୁ । ସାଥ୍ ହୋଇ ବୁଲନ୍ତ । ଖାଇବାବେଳ ହେଲେ, ବଲୁଆ ଖସିଯାଏ । ହରଣ ଏକଥା ବହୁବାର ଦେଖିଛ । କନ୍ତୁ କଛ କହେ ନାହିଁ । ଥରେ ସେ ବଲୁଆକ୍ କହଲ – "ତୁ କେଉଁଠିକୁ ଖସି କର ଯାଉଛୁ, ମୁଁ ଜାଣିପାରୁ ନାହିଁ । ଏଥର ମୁଁ ତୋ ସାଥିରେ ଯିବ । ସାଙ୍ଗ ହୋଇ ଖାଇବା ।"

ବଲୁଆ ଭାର ଚତୁର । ସେ କହଲ – "ଗୋଟିଏ ଜମିରେ ଗହମ ଚାଷ ହୋଇଛ । ଚାଲ, ସେଇଠିକୁ ଖାଇବାକୁ ଯିବା ।"

ପରଦନ ବଲୁଆ ଓ ହରଣ ସାଙ୍ଗ ହୋଇ ବାହାରଲେ । ବଲୁଆଟି ହରଣକୁ ଗହମ କ୍ଷେତରେ ପହଞ୍ଚାଇ ଦେଲ । ଗହମ କ୍ଷେତଟି ଦେଖି ହରଣ ଭାର ଖୁସି । ବଲୁଆକୁ ତାରଫ କଲ । ଗହମ କ୍ଷେତରେ ପଶି ଖାଇବାରେ ସେ ବ୍ୟସ୍ତ । କୁଆଡ଼କୁ ଅନାଉଁ ନଥାଏ । ସେଇ କ୍ଷେତରେ ଗୋଟିଏ ଫାଶ ବସିଥିଲ । ହରଣଟି ତାହା ଜାଣି ପାରଲ ନାହିଁ । ଖାଇ ଖାଇ ଯାଉ ଯାଉ ସେ ଫାଶରେ ଚଢ଼ିଗଲ । ଏଥର ହରଣ ଯାଏ କୁଆଡ଼େ ? ମୁକ୍ତ ହେବାକୁ ସେ ବ୍ୟାକୁଳ । ନଜେ ଚେଷ୍ଟା ବହୁତ କଲ । ଟାଣି ଓଟାର ହେଲ । ମୁକୁଳ ପାରଲ ନାହିଁ । ବଲୁଆ ତ ସେଠି ଥିଲ । ତାକୁ କହଲ–

"ଦେଖନ୍ତୁ ନାଁ, ମୁଁ କେତେ ହଇରାଣ ହେଲିଣି । ଦାନ୍ତରେ ଟିକିଏ ଫାଶଟା କାଟି ଦେ । ମୁଁ ମୁକୁଳିଯାଏ ।"

ବଲୁଆଟି ମୁଣ୍ଡ ହଲାଇ ନାହିଁ କଲା । ତା'ପରେ କହିଲା—"ଆଜି ମଙ୍ଗଳବାର । ମୋର ଉପାସ । ଚମଡ଼ାରେ ଫାଶ ହୋଇଛି । ମୁଁ ଆଜି ଚମକୁ ଦାନ୍ତରେ କାଟିବି ନାହିଁ ।"

ଏହା ଭିତରେ ବହୁ ସମୟ ଚାଲିଗଲାଣି । ଠାଣି ଓଠାଇ ହୋଇ ହରିଣଟି ହାଲିଆ । ସେ ମଲାପରି ପଡ଼ିଥାଏ । ଜଗୁଆଳଟି ଆସି ଦେଖିଲା—ହରିଣ ଫାଶରେ ପଡ଼ି ମରିଯାଇଛି । ସେ ଫାଶ ଖୋଲିଦେଇ କଆରିର ଆରପଟକୁ ଗଲା । ହରିଣ ଏଇ ମଉକାରେ ଛୁଟି ଦୌଡ଼ିଲା । ଜଗୁଆଳି ହରିଣର ପଳାଇବା ଦେଖି ରାଗିଯାଇ ତାର ଠାଙ୍ଗିଆକୁ ହରିଣକୁ ଲକ୍ଷ୍ୟକରି ଫିଙ୍ଗିଲା । ହରିଣ ତ ପଳାଇଛି । ବଲୁଆ ବଲ ଦାଡ଼ରେ ଲୁଚି ବସିଥିଲା । ଠାଙ୍ଗିଆ ଯାଇ ତା' ମୁଣ୍ଡରେ ବାଜିଲା ।

ପିଲାଏ କହିଲେ—

ମଙ୍ଗଳବାର ବଲୁଆର ଉପାସ
ଦାନ୍ତରେ କାଟିଲା ନାହିଁ ସେ ଫାଶ
ମିଛ କହି ଠକେ ସାଥିକୁ ତା'ର
ମୁଣ୍ଡେ ବସେ ଠାଙ୍ଗିଆର ପାହାର ।

***

# ଏକା ଗୋଇଠାକେ କୁଜା ସୁନ୍ଦର

( ଗ୍ରୀକ୍ ଲୋକ କଥା )

ଏକଦା ଦୁଇଟି ବନ୍ଧୁ ଥିଲେ । ଜଣେ କୁଜା । ଆଉ ଜଣକ ଅନ୍ଧ । ସେମାନେ ଗାଁରେ ଚଳିପାରିଲେ ନାହିଁ । ସାଥିହୋଇ ସହରକୁ ଗଲେ । ଯାହା ହେଉ, ତାଙ୍କ ଭାଗ୍ୟ ଭଲ । ସେମାନେ ପୋତା ମାଲ କିଛି ପାଇଗଲେ । ଏଥର ଦୁହେଁ ଭାରି ଖୁସି ।

ହେଲେ କୁଜାଟି ବସାରେ ଏକୁଟିଆ ଥାଏ । ଯେଉଁ ଧନ ସେମାନେ ପାଇଥିଲେ, କୁଜା ତାକୁ ଖୋଲିକରି ଦେଖିଲା । ତାର ଲୋଭ ହେଲା ।

ସେ ଜଙ୍ଗଲକୁ ଯାଇ ବଡ଼ାକ୍ର ସାପଟିଏ ମାରିଲା । ତାକୁ ଆଣି ଗୋଟିଏ ପାତ୍ରରେ ରାନ୍ଧିବାକୁ ଲାଗିଲା । ଅନ୍ଧ ସେଠି ପହଞ୍ଚିଗଲା । ଅନ୍ଧର ଅବିଶ୍ୱାସକୁ ଏଡ଼େଇବା ପାଇଁ କୁଜାଟି ପାଣି ଆଣିବାକୁ ଗଲା । ଅନ୍ଧଟି ରନ୍ଧାପାତ୍ରର ଘୋଡ଼ଣୀ ଖୋଲିଦେଲା । ସାପର ବଡ଼ାକ୍ର ବାମ୍ଫ ବାଜି ଅନ୍ଧର ପର୍ଦ୍ଦା ଖୋଲିଗଲା । ତାର ଆଖି ଭଲ ହୋଇଗଲା । ଏଥର ସେ ସବୁ ପରିଷ୍କାର ଭାବରେ ଦେଖି ପାରୁଛି । ସେ ଦେଖିଲା—କୁଜା ସାପଟିଏ ରାନ୍ଧୁଛି । କୁଜା ଯେ ତାକୁ ମାରିବାର ମତଲବରେ ଅଛି, ଏଥିରେ ତାର ସନ୍ଦେହ ରହିଲା ନାହିଁ ।

ପାଣି ଧରି କୁଜାଟି ଫେରିଲା । ଅନ୍ଧ ତ ସେତେବେଳକୁ ଖୁବ୍ ରାଗିଯାଇଥିଲା । ତା' ପିଠିକୁ ଖୁବ୍ ଜୋରରେ ଗୋଇଠାଏ ପକାଇ କହିଲା—"ତୁ ମୋତେ ମାରିବାକୁ ଚାହୁଁଥିଲୁ ?"

ଗୋଇଠାଟି ଖାଇ କୁଜାର କୁଜ ଉଭେଇଗଲା । ଉଭୟେ ଖୁସି ହୋଇଗଲେ । ଅନ୍ଧ ଚକ୍ଷୁ ପାଇଲା । କୁଜାର କୁଜ ଆଉ ନାହିଁ । ସେମାନେ ଘରକୁ ଫେରିଲେ । ଯାହା ଧନ ପାଇଲେ, ତାକୁ ଦୁଇଭାଗ କରିଦେଲେ । ସେଇଦିନଠୁ ସେମାନେ ବେଶ୍ ସୁଖ ଶାନ୍ତିରେ କାଳ କଟାଇଲେ ।

—*—

# କାହା ଭାଗ୍ୟ

( ବୃକ୍‌ଆ ଲୋକ କଥା )

ବ୍ରାହ୍ମଣୀଟିଏ ତାର ସ୍ୱାମୀ ବ୍ରାହ୍ମଣ ସହିତ ରହୁଥାଏ । ସେମାନଙ୍କର ସାତୋଟି ଝିଅ ।

ଦିନେ ବ୍ରାହ୍ମଣ ସାତଝିଅଙ୍କୁ ଡାକି ପଚାରିଲା—“କାହା ଭାଗ୍ୟ ତୁମେ ଭୋଗୁଛ ?”

ସାନ ଛଡ଼ା ସମସ୍ତେ କହିଲେ—“ବାପା, ଆପଣଙ୍କର ଭାଗ୍ୟ ଯୋଗୁ ଆମକୁ ଦାନା ପାଣି ମିଳୁଛି ।” କିନ୍ତୁ ସାନଟି କହିଲା—“ମୋ ଭାଗ୍ୟ ମୁଁ ଭୋଗୁଛି ।”

ସାନଝିଅ ଉତ୍ତରରେ ବ୍ରାହ୍ମଣଟି କ୍ଷୁବ୍ଧ । ବିରକ୍ତ । କାହାକୁ ସେ କିଛି କହିଲା ନାହିଁ । ପରଦିନ ସକାଳୁ ସାନଝିଅକୁ ଧରି ଜଙ୍ଗଲକୁ ଚାଲିଗଲା । ମନେ ମନେ ପଣ କଲା, ଜଙ୍ଗଲରେ ପ୍ରଥମେ ସେ ଯାହାକୁ ଭେଟିବ, ତାକୁ ସେ ତା’ ଝିଅକୁ ବାହାଦେବ । ବ୍ରାହ୍ମଣ ଜଙ୍ଗଲରେ ପଶୁ ପଶୁ ବାର୍‌ହାକୁ ଭେଟିଲା । ବ୍ରାହ୍ମଣ ତା’ ମଷ୍ତିରେ ଦୃଢ଼ । ତେଣୁ ସେ ବାର୍‌ହା ସାଥିରେ ତା ଝିଅକୁ ବାହା କରିଦେଲା । ଝିଅକୁ ବାର୍‌ହା ପାଖରେ ଜଙ୍ଗଲରେ ଛାଡ଼ି ଘରକୁ ଫେରି ଆସିଲା ।

ଜଙ୍ଗଲରେ ଝିଅଟି ଏକୁଟିଆ । ତଥାପି ସେ ନିର୍ବିକାର । ବରଂ ଭାଗ୍ୟକୁ ଆଦରି ସନ୍ତୁଷ୍ଟ ହୋଇ ରହିଲା ।

ମଣିଷ ତ ସେ । ଗଛ ମୂଳରେ ରହିପାରିବ ନାହିଁ । ଗଛର ଡାଳ ଘରି କୁଡ଼ିଆଟିଏ କଲା । ସେଥିରେ ସେ ରହେ । ଚାଖରେ ବାରିହାକୁ ରଖେ । ସେ ତାର ସ୍ୱାମୀ । ସନ୍ତାନପ୍ରଦ ।

ବାରିହାଟି ମାଟି ଖୋଳି ଜହ୍ନି ମଞ୍ଜି ଆଣି ବୁଣିଲା । କିଛିଦିନ ପରେ ଗଛ ହୋଇ ଜହ୍ନି ଫଳିଲା । ଝିଅଟି ତୋଳିଆଣି ଦକ୍ଷିଣ କରି ଦିଏ ।

ଗୋଟିକରୁ ଚାଉଳ ଆଉ ଡାଲି । ଆଉ ଖଣ୍ଡରୁ ଦୁଧ ବାହାରେ । ଝିଅଟି ସେସବୁ ସଂଗ୍ରହ କରି ରଖେ । ଅଳ୍ପଦିନ ଭିତରେ ଝିଅଟି ଧନୀ ହୋଇଗଲା ।

ତା'ପରେ ସେ ତାର ବାପ ମା ଭାଇ ଭଉଣୀଙ୍କୁ ନିମନ୍ତ୍ରଣ କଲା । ସମସ୍ତେ ଆସିଲେ । ତାଙ୍କୁ ସେ ବଢିଆ ବଢିଆ ଖାଦ୍ୟ ଖୁଆଇଲା ।

ଏସବୁ ଦେଖି ତାର ବାପ ମା କହିଲେ—"ଝିଅ ତୁ ଠିକ୍ କହୁଥିଲୁ । ତୁ ତୋ ଭାଗ୍ୟ ଭୋଗୁଛୁ ।"

* * *

## ମେଣ୍ଢା ଓ ବଲୁଆ

(ଭୁକ୍ତା ଲୋକ କଥା)

ମେଣ୍ଢା ବଲୁଆ ଭାରି ସାଙ୍ଗ । ଦିନେ ସାଥିହୋଇ ସେମାନେ ଖାଦ୍ୟ ଖୋଜି ବାହାରିଲେ । ବାଟରେ ଗଡ଼ଖାଇ ପଡ଼ିଲା । ବଲୁଆଟି ଡେଇଁକରି ପାର ହୋଇଗଲା । ବିଚାରି ମେଣ୍ଢା ଡେଇଁ ପାରିଲା ନାହିଁ । ଗଡ଼ଖାଇରେ ପଡ଼ିଗଲା । ସେ ସେଇ ଗଡ଼ଖାଇ ଭିତରେ ଯାଇ ଯାଇ ରଜାଙ୍କ ଉଆସ ପାଖରେ ପହଞ୍ଚିଗଲା । ଉଆସ ଦୁଆର ମୁହଁରେ ଜଗୁଆଳ । ସେ ମେଣ୍ଢାକୁ ଦେଖି କହିଲା – "ତୁ କିଏ ? ତୋର ଏତେ ସାହାସ ଯେ ରଜାଙ୍କ ଉଆସରେ ପଶୁଛୁ ?"

ମେଣ୍ଢାଟି କହିଲା –

"ମେଷ ମୁହିଁ ମହୀପାଳ
ଲଙ୍ଗୁଳ ଯାକ ମୋ ବାଳ
ମୋଟା ଶିଙ୍ଘ ବଙ୍କା ମୋହର
ସେଥିରେ ମୁଁ ଭାଙ୍ଗେ ପଥର
ଫଟାଇବି ମୁଣ୍ଡ ରଜାର"

ଏହା ଶୁଣି ଜଗୁଆଳଟି ଡ୍ରିନଆ । ପ୍ରାଣବିକଳରେ ସେଠୁ ସେ ପଳାଇଲା । ମେଣ୍ଢାଟି ନିର୍ଭୟରେ ଉଆସରେ ପଶିଲା । ପାଖରେ ଭଣ୍ଡାର ଘର । ସେଇଟି ମେଲାଥିଲା । ତା' ଭିତରେ ପଶି ମେଣ୍ଢା

ଲଡ୍ଡୁ, ପେଡ଼ା, ଜଲେବି, ବରଫି, କାଲାକାନ୍ଦ, ବାଲୁସାଇ, ସୋନ-ପାପୁଡ଼ିରୁ ପେଟେ ଖାଇଲା । ଧିରେ ଧିରେ ତା' ଘରକୁ ଫେରି ଆସିଲା ।

ସନ୍ଧ୍ୟାବେଳେ ବଲୁଆ ବି ଘରକୁ ଫେରିଲା । ମେଣ୍ଢା ବଲୁଆର ସୁଆଁ ଭେଟ ହେଲା । ମେଣ୍ଢାଟି ଖୁସିଥିବାର ଦେଖି ବଲୁଆ କହିଲା— ଆ, ଆମର କିଭ ଚଟାଚଟି ହେବା । ମେଣ୍ଢା ସେଥିରେ ରାଜି । ଦୁହେଁ ଜିଭ ଚଟାଚଟି ହେଲେ । ବଲୁଆ ମେଣ୍ଢା ଜିଭ ଚାଟି ଜାଣିଲା— ମେଣ୍ଢା ଜିଭ ଭାରି ମିଠା । ନିଶ୍ଚୟ ସେ ଭଲ ଜିନିଷ ଖାଇଛି ।"

ବଲୁଆ ପଚାରିଲା—"କ'ଣ ଖାଇଲୁ ଯେ ତୋ ଜିଭ ଏତେ ମିଠା ହୋଇଛି ?"

ମେଣ୍ଢା ସରଳ । ସତ କହେ । ସେ ସବୁ କଥା ଗୋଟି ଗୋଟି କରି କହିଲା । ମେଣ୍ଢାଠାରୁ ଶୁଣି ବଲୁଆ ମନ ଉଚ୍ଛାଟ । ସେ ରାଜା ଘରକୁ ଯିବାକୁ ଉଚ୍ଛନ୍ନ । ମେଣ୍ଢାଠାରୁ ସେ ଗୀତ ଶୁଣି ମୁଖସ୍ଥ କଲା । ତା' ମନ ତ ଲାଗିଛି, ପରଦିନ ଗଡ଼ଖାଇ ଭିତରକୁ ଡେଇଁ ପଡ଼ିଲା । ପହଁରି ପହଁରି ଯାଇ ଉଆସ ଦୁଆର ମୁହଁରେ ହାଜର । ଜଗୁଆଳ କର୍କଶ କଣ୍ଠରେ ପଚାରିଲା—"ତୁ କିଏସେ ? ତୋର ଏତେ ସାହସ ! ବନାନୁମତିରେ ରାଜାଙ୍କ ଉଆସରେ ପଶୁଛୁ ।"

ବଲୁଆଟି ମେଣ୍ଢାଠାରୁ ତ ତାଲିମ ପାଇଥିଲା, ତେଣୁ ସେ କହିଲା,

"ମେଷ ମୁହିଁ ମହୀପାଳ
ଲାଙ୍ଗୁଳ ଯାକ ମୋ ବାଳ ।
ମୋଟା ଶିଙ୍ଘ ବଙ୍କା ମୋହର
ସେଥିରେ ମୁଁ ଭାଙ୍ଗେ ପଥର
ଫଟାଇବି ମୁଣ୍ଡ ରାଜାର ।"

ଏହାଶୁଣି ଜମ୍ବୁଆଳ ଉଠିଗଲା । ଉଆସ ଦୁଆର ଛୁଡ଼ି ପ୍ରାଣ ବିକଳରେ ଭିତରକୁ ଚାଲିଗଲା । ମେଣ୍ଢାପରି ବଲୁଆ ବି ଭଣ୍ଡାର ଘରେ ପଶି ଲଡ଼ୁ, ବରଫି, ପେଡ଼ା ଜଲେବୀ, କାଲାକନ୍ଦ, ବାଲୁସାଇ, ସୋନପାପୁଡ଼ି ଖାଇବାରେ ଲାଗିଥାଏ । ଏତିକବେଳେ ପାଞ୍ଚ ବଲୁଆ ଜଙ୍ଗଲରେ ବୋବାଇଲେ । ଗୋଟିଏ ବଲୁଆ ବୋବାଇଲେ ଅନ୍ୟମାନେ ବି ବୋବାଇବେ । ଏ ହେଲା ବଲୁଆଙ୍କର ପ୍ରକୃତି । ତେଣୁ ଏ ବଲୁଆଟି ବୋବାଇଲା ।

ଉଆସରେ ବଲୁଆ ବୋବାଉଛି ବୋଲି ଚାରିଆଡ଼ୁ ଲୋକେ ଧାଇଁ ଆସିଲେ । ଦେଖିଲେ, ଭଣ୍ଡାରଘରେ ବଲୁଆଟିଏ ଅଛି । ସମସ୍ତେ ପିଟି ପିଟି ବଲୁଆକୁ ଦରମରା କରିଦେଲେ ।

ଘୁଷୁରି ଘୁଷୁରି ବଲୁଆଟି ତାର ଘରକୁ ଫେରିଲା ।

—*—

# ମଧ ରାତ୍ରିର ଭୋଜି

( ବୁକ୍ସା ଲେକାକଥା )

ବ୍ରାହ୍ମଣ ଓ ବ୍ରାହ୍ମଣୀଟିଏ ଥାଆନ୍ତି । ତାଙ୍କର ସାତ ଝିଅ । ସେମାନେ ଘର ଗରିବ । ଭିକ ମାଗି ଚଳନ୍ତି । ସେମାନେ ଗର ଅଭାବୀ । ଭଲକରି ଖାଇବା ଦିନଟା ତାଙ୍କ ଭାଗ୍ୟରେ ଜୁଟେ ନାହିଁ । ଦିନେ ବ୍ରାହ୍ମଣ ବ୍ରାହ୍ମଣୀକୁ କହିଲା—ଆମେ ଏମିତି କେତେଦିନ ଖାଇ ରହିବା । ଦିନେ କିଛି ସୁଆଦିଆ ଖାଦ୍ୟ ଖୁଆନ୍ତୁ ନାହିଁ । ବ୍ରାହ୍ମଣର ଇଚ୍ଛା, ଦିନେ ଭଲକରି ଦି'ଟା ଖାଆନ୍ତା । କିନ୍ତୁ ସାହାସ କରିପାରେନି । ଯାହା ଭଲ ଜିନିଷ ରନ୍ଧା ହେବ, ନଅ ଜଣ ଖାଇବାକୁ । ବହୁତ ପଇସା ଲାଗିବ । ସେ ବା କାହୁଁ ପାରି ଉଠିବ ।

ମନରେ ଗୋଟେ କଥା ପଶିଲେ, ମନଉଡ଼େ । ଥଳକୂଳ ମାନେ ନାହିଁ । ବ୍ରାହ୍ମଣ ଦିନେ ବ୍ରାହ୍ମଣୀକୁ କହିଲା—"ହଇଲୋ, ମୋର ଇଚ୍ଛା ଦିନଟା ଭଲ ଜିନିଷ ଖାଇବାକୁ । ପିଲମାନଙ୍କୁ ଦେଲେତ ବହୁତ ଖର୍ଚ୍ଚ ପଡ଼ିବ । ଆମେ ପାରିବା ନାହିଁ । ଗୋଟାଏ କଥା କରିବୁ । ସେମାନେ ଶୋଇପଡ଼ିଲା ପରେ ପିଠା ଦିନଟା କରିବୁ । ତୋର ମୋର ମନବୋଧ କରି ଖାଇବା ।

ବ୍ରାହ୍ମଣୀଟି ବ୍ରାହ୍ମଣ କଥାରେ ରାଜି ହେଲା । କିନ୍ତୁ ବାପାମାଙ୍କ କଥାଟା ପିଲାମାନେ ଶୁଣିଥିଲେ । ତେଣୁ ସେଦିନ ରାତିରେ ସେମାନେ ଶୋଇଲେ ନାହିଁ । ଛଟା ଆଖି ଖୋଲି ବିଛଣାରେ ପଡ଼ି ରହିଲେ ।

ପିଲାମାନେ ଶୋଇ ଯାଇଛନ୍ତି ବୋଲି ଭାବି ବ୍ରାହ୍ମଣଟି ପିଠା କରିବାକୁ ବସିଲା । ସେ ଚୁଲିରେ ତାଉଆ ବସାଇ, ଯେମିତି ପିଠାଟିଏ ଯୋଗାଡ଼ୁଛି, ପରିସ୍ରା କରିବା ବାହାନାରେ ଗୋଟିଏ ଝିଅ ଉଠିଲା । ତାକୁ ମା' ପିଠାଟିଏ ଖୁଆଇ ଶୁଆଇ ଦେଲା । ତାପରେ ଦ୍ୱିତୀୟ ପିଠା ଯୋଗାଡ଼ିଲା ବେଳକୁ ଆଉ ଜଣେ ପରିସ୍ରା କରି ଉଠିଲା । ତାକୁ ଦ୍ୱିତୀୟ ପିଠାଟି ଖାଇବାକୁ ଦେଇ ଶୋଇବାକୁ କହିଲା । ଏମିତି ପ୍ରତିଥର ପିଠା ଯୋଗାଡ଼ିଲା ବେଳେ ଝିଅଟିଏ ପରିସ୍ରା କରିବାକୁ ଉଠେ । ତାକୁ ପିଠାଟିଏ ଖୁଆଇ ବ୍ରାହ୍ମଣୀ ଶୁଆଇ ଦିଏ । ଏମିତି ଭାବରେ ସବୁ ଝିଅମାନେ ଗୋଟେ ଗୋଟେ ପିଠା ଖାଇ ଶୋଇଲେ ।

ଶେଷକୁ ଦୁଇଟି ପିଠା ବାକି ରହିଲା । ବ୍ରାହ୍ମଣ ଓ ବ୍ରାହ୍ମଣୀଙ୍କ ଭାଗରେ ଗୋଟିଏ ଗୋଟିଏ ପିଠା ପଡ଼ିଲା । ବ୍ରାହ୍ମଣ ଓ ବ୍ରାହ୍ମଣୀଙ୍କର କଳ୍ପନା ଜଳ୍ପନା ସବୁ ପାଣି ଫୋଟକାପରି ମିଳେଇଗଲା ।



# ସୁନ୍ଦରୀ ଓ ଚତୁରୀ ବୋହୂ

(ବୁନ୍‌ସା ଲୋକକଥା)

ବୁଢ଼ାଟିଏ । ତାର ସାତପୁଅଙ୍କୁ ସାତବୋହୂ । ବୋହୂ ଭିତରୁ ସାନଟି ଖୁବ୍ ସୁନ୍ଦରୀ । ଅନ୍ୟମାନଙ୍କୁ ଅସୁନ୍ଦରୀ କହିହେବ ନାହିଁ, କିନ୍ତୁ ଚଳନ୍ତିଆ ।

ଗୋଟିଏ ଗ୍ୱେର ସାନବୋହୂଙ୍କୁ ଦେଖିଦେଲା । ସେଦିନଠାରୁ ତା ମନ ତା'ଠି ଲାଗିଛି । ତାକୁ କେମିତି ଧରେଇନେଇ ବାହାହେବ, ସେଇଥିପାଇଁ ତାର ଚିନ୍ତା । ସେଇ ମତଲବରେ ଦିନେ ସେ ବୁଢ଼ା ଘରେ ପହଞ୍ଚିଲା । ବୁଢ଼ା ଘରେ ତ ତାକୁ କେହି ଚିହ୍ନି ନଥିଲେ । ସମସ୍ତେ ଭାବିଲେ, ସେ ଜଣେ କୁଣିଆ । ତାକୁ ସେମାନଙ୍କର ଆଦର ଦେଖିବ କି'ଣ ? ତାକୁ ନେଇ ଖଟରେ ବସାଇଲେ, ଗୋଡ଼ ଧୋଇବାକୁ ପାଣି ଆଣିଦେଲେ । ତାପରେ ତା ପାଇଁ ହୁକାଟିଏ ସଜାଡ଼ି ଦେଲେ ।

ଗ୍ୱେରଟି ଆପେ ଆପେ ତା ପରିଚୟ ଦେଲା ନାହିଁ । ବୁଢ଼ାଟି ଆସି ତା ପାଖରେ ବସି ପଚାରିଲା "ବାପ ! ମୁଁ ତମକୁ ଚିହ୍ନି ପାରୁନାହିଁ । ତମ ଘର କେଉଁଠି ? ତମେ ଆମର କି'ଣ ହେବ ?"

ଗ୍ୱେରଟି କହିଲା "ମୁଁ ତମର ସାନବୋହୂର ବଡଭାଇ । ଆମର କାଳି ହେଉଛି । ମୁଁ ତାଙ୍କୁ ଘରକୁ ନେବାକୁ ଆସିଛି ।"

ଏକଥା ଶୁଣି ବୁଢ଼ୀଟି କହିଲା—ହଉ, ଭଲକଲ । ତାପରେ ସବୁ ବୋହୂମାନଙ୍କୁ ଡାକି କହିଲା—"ସାନବୋହୂର ବଡ଼ଭାଇ ଆସିଛି । ଯାଅ, ତାକୁ ମୁଣ୍ଡିଆ ମାର ।"

ବୁଢ଼ୀ କଥାରେ ବୋହୂମାନେ ଯାଇ ମୁଣ୍ଡିଆ ମାରିଲେ । କିନ୍ତୁ ସମସ୍ତେ ଆବାକାବା । ସମସ୍ତେ ସାନବୋହୂର ବଡ଼ ଭାଇକୁ ଦେଖିଛନ୍ତି । ଏ ତ ସେ ନୁହନ୍ତି । ତେଣୁ ସମସ୍ତଙ୍କ ମନରେ ସନ୍ଦେହ । ସେଥିପାଇଁ ସେମାନେ ସେଠି ଠିଆ ହୋଇ ରହିଲେ ।

ଶାଶୁ ଆସି କହିଲେ—"ଆଲୋ ଠିଆ ହୋଇଛ କ'ଣ ? ଯାଅ କୁଣିଆଙ୍କ ପାଇଁ ରାନ୍ଧ ।"

ସାନବୋହୂଟିର ରାନ୍ଧଣା ଭାରି ବଢ଼ିଆ । ସେ କୁଣିଆ ପାଇଁ ଭାତ, ଡାଲି, ଆଳୁ ତରକାରୀ କଲା । କୁଣିଆ ଖାଇସାରିବା ପରେ ବୁଢ଼ୀ ହୁକାଟିଏ ଆଣି ଟାଣିବାକୁ ଧରେଇ ଦେଲା ।

କୁଣିଆ ଘରକୁ ଯିବାକୁ ଉଛନ୍ତି । ବୁଢ଼ୀକୁ ସେ କହିଲା— "ଘରେ ବହୁତ କାମ । ହେଲା କଲେ ଅସୁବିଧା ହେବ । ବୋହୂକୁ ଛାଡ଼ ଦେଲେ ସେ ଶୀଘ୍ର ଚାଲିଯିବ ।"

ବୁଢ଼ୀ ସାନବୋହୂକୁ କହିଲା—"ଭାଇ ତ ନବାକୁ ଆସିଛି । ଡେରି ଆଉ କାହିଁକି ? ଶୀଘ୍ର ବାହାରିପଡ଼ ।"

ସାନବୋହୂଟି କହିଲା ! "ମୁଁ ତ ସେ ଭାଇଙ୍କୁ କେବେ ଦେଖି ନାହିଁ । ତାଙ୍କ ସାଥିରେ କେମିତି ଯିବ ?"

ବୁଢ଼ୀ କହିଲା—"ପାଗଲୀ ! ବାପା ଭାଇ ତ କାମରେ ବ୍ୟସ୍ତ ଥିବେ । ଫୁରୁସତ ନଥିବ । ଏ ହୁଏତ ତୋର ଲେଖାଯୋଖା ଭାଇ । ମନା କାହିଁକି କରୁଛୁ । ବାହାରିପଡ ।"

ସାନବୋହୂର ଆଉ ଅବିଶ୍ୱାସ କରିବାର କିଛି ନଥିଲା । ଘରକୁ ଯିବ ବୋଲି ମନ ତାର ଆନନ୍ଦ । ଦିନେ ଓଳିଏରେ ସେ ଫେରିବ । ତେଣୁ ଲୁଗା ଦି'ଖଣ୍ଡ ନେଲେ ଯଥେଷ୍ଟ । ତାକୁ ପୁଡ଼ିଆଟିଏ କଲା । ନିଜେ ବାହାରି ପଡ଼ିଲା । ଚୋରକୁ ଆସି କହିଲା—"ଭାଇ ! ଚାଲ ଏଥର ଯିବା ।"

ଚୋରଟି ତ ଧୂର୍ତ୍ତ । ସମସ୍ତଙ୍କ ମନ ନେଲେ, ଅବିଶ୍ୱାସ ହେବ ନାହିଁ । ସେଥିପାଇଁ ଜଣ ଜଣକର ସମସ୍ତଙ୍କଠାରୁ ସେ ବିଦାୟ ନେଇ ବାହାରିଲା । ସେ ଆଗେ ଆଗେ ବୋହୂଟି ତା ପଛେ ପଛେ ।

ସେମାନେ ଗାଁ ଛାଡ଼ି ବହୁତ ବାଟ ଚାଲି ଆସିଲେଣି । ଏଥର ଚୋରଟି ଜଙ୍ଗଲ ରାସ୍ତା ଧରିଲା । ଏହା ଦେଖି ବୋହୂଟି ଟିକେ ଅଟକିଯାଇ ପଚାରିଲା—"ଭାଇ ! ଏ ରାସ୍ତାତ ଜଙ୍ଗଲକୁ । ଆମ ଗାଁକୁ ନୁହେଁ । ଏ ବାଟେ କାହିଁକି ଯିବା ?"

ଚୋରଟି କହିଲା—"ତୁ ଜାଣିନୁ । ଏଇଟା ଅଳ୍ପ ବାଟ । ଜଲଦି ପହଞ୍ଚିବା ।"

ବୋହୂଟି ତ ତାକୁ ଭାଇ ବୋଲି ଧରି ନେଇଛି । ତେଣୁ ତାର ସନ୍ଦେହ କରିବାର କିଛି ନଥିଲା । ସେ ତା ପଛେ ପଛେ ଚାଲିଲା ।

କିଛି ବାଟ ଗଲାପରେ ଜଙ୍ଗଲରେ ପକ୍ଷୀଟିଏ ଗାଇଲା । ତା ଶୁଣି ବୋହୂଟି ପଚାରିଲା—'ଭାଇ ! ସେ ଚଢ଼େଇଟି କ'ଣ କହୁଛି ।"

"ଭଉଣୀ ! ପକ୍ଷୀମାନେ ଏମିତି ଏଠି ବୋବାନ୍ତି । ଏହା ଥିଲା ଚୋରର ଉତ୍ତର ।"

କଥାବାର୍ତ୍ତା କରି ବୋହୂଟିର ସାହାସ ବଢିଗଲାଣି । ତେଣୁ ସେ ପଚାରିଲା, "ଭାଇ ! ତମ ଘର କୋଉଗାଁରେ ?"

ଶ୍ୱେରଟି ଟିକେ ରାଗିକରି କହିଲା—"ମତେ ଭାଇ ଡାକିବା ବନ୍ଦ କର । ମୁଁ ତୋ ଭାଇ ନୁହଁ । ମୁଁ ତୋର ସ୍ୱାମୀ । ମୋତେ ସ୍ୱାମୀ ବୋଲି ଡ଼ାକ ।"

ଶ୍ୱେରଟି ପାଟିରୁ ଏକଥା ଶୁଣି ବୋହୂଟି ଡରିଗଲା । ସେ କିନ୍ତୁ ଖୁବ୍ ଚାଲାକ୍ । କଥାଟା ବଢ଼ାଇବାକୁ ସେ ଜମା ଚାହେଁ ନାହିଁ । ସେ ସମ୍ପୂର୍ଣ୍ଣ ନୀରବ । ଧୀରେ ଧୀରେ ଶ୍ୱେରକୁ ଅନୁସରଣ କଲା ।

ଜଙ୍ଗଲ ମଝିରେ ଶ୍ୱେରର ଘର । ଘରେ ତା'ର ବୁଢ଼ୀମା । ତା ସାଙ୍ଗକୁ ମାଈ ଗଧଟିଏ । ଶ୍ୱେରଟି ଘରେ ପହଞ୍ଚି ତା ମାକୁ କହିଲା—"ମାଲୋ ! ମୁଁ ଗୋଟିଏ କନ୍ୟା ଆଣିଛି ।"

ମା ଉତ୍ତର ଦେଲା—"ଯଦି କନ୍ୟାଟିଏ ଆଣିଛୁ, ବଜାରକୁ ଯାଇ ଜିନିଷପତ୍ର କିଣିଆଣେ । ବାହାଘର ହେବ ।"

ଶ୍ୱେରର ତ ମନ ଲାଗିଛି । ପରଦିନ ସକାଳୁ ଉଠି ବାହାଘର ଜିନିଷ କିଣିବାକୁ ବାହାରିଗଲା ।

ବୋହୂଟିଏ ପାଇ ବୁଢ଼ୀ ଭାରି ଖୁସି । ଭାବିଲା ବୋହୂଟି ତାର ଭବିଷ୍ୟତ । ଧନ ଦଉଲତ ଦେଖିଲେ ସେ ଖୁସି ହେବ । ତେଣୁ ପୁଅ ଶ୍ୱେରକର ଆଣିଥିବା ଅଲଙ୍କାର, ଲୁଗାପଟା, ଜିନିଷପତ୍ର ଓ ଟଙ୍କା-ପଇସା ସବୁ ବୋହୂକୁ ଦେଖାଇ ଦେଲା । କହିଲି "ବୋହୂ ଲୋ ! ଏସବୁ ତୋର । ଏହାକୁ ହୁସିଆରରେ ସାଇତି କରି ରଖିବୁ ।"

ତୋର ମା' ବୋହୂଟିକୁ ନିଜର ବୋଲି ଭାବିଲାଣି । ତେଣୁ ତାକୁ ସେ କହିଲା—"ମାଲୋ, ମୋ ମୁଣ୍ଡରେ ବହୁତ ଉକୁଣୀ । ଟିକେ ଦେଖି ଦିଅନ୍ତୁନ ।"

ବୋହୂଟି ବୁଢ଼ୀର ମୁଣ୍ଡକୁ ଦେଖି ବସିଲା । ଟିକକ ପରେ କହିଲା—"ତମ ମୁଣ୍ଡରେ ପ୍ରବଳ ଉକୁଣୀ । ଉଷୁମ ହାଣ୍ଡି ମୁଣ୍ଡରେ ଉଗୁଡ଼େଇ ଦେଲେ ଉକୁଣୀ ସବୁ ମରି ଯିବେ ।"

ବୁଢ଼ୀ ଏଥିରେ ରାଜି । ବୋହୂ ଚୁଲି ଜାଳି ହାଣ୍ଡିଟି ତତେଇଲା । ବୁଢ଼ୀଟିର ବୋହୂ ଉପରେ ପୁରା ବିଶ୍ୱାସ । ଉକୁଣୀ ମରିବେ ବୋଲି ସେ ଭାରି ଖୁସି । ତେଣୁ ସେ ଅନ୍ୟମନସ୍କ । ଏହାର ସୁବିଧା ନେଇ ବୋହୂଟି ହାଣ୍ଡିଟିକୁ ଖୁବ୍ ତତେଇ ଦେଲା । ତାପରେ ଆସ୍ତେକରି ନେଇ ବୁଢ଼ୀ ମୁଣ୍ଡରେ ଓଗୁଡ଼େଇ ଦେଲା । ବୁଢ଼ୀ ଆଉ ଯାଏ କୁଆଡ଼େ । ହାଣ୍ଡିର ବାମ୍ଫରେ ସେ ଅଣନିଶ୍ୱାସୀ । ଗରମରେ ମୁଣ୍ଡଟା ତାର ଠୋକରେ ଫାଟିଗଲା । ସେ ମରିଗଲା ।

ବୋହୂଟି ଦେଖିଲା, ବୁଢ଼ୀଟି ମରିଗଲାଣି । ଗୈରୁ ଆସିବାକୁ ବହୁତ ଡେରି । ସେ ଘରେ ଯେତେ ଯାହା ମୂଲ୍ୟବାନ ଜିନିଷ ଥିଲା ସବୁକୁ ବାନ୍ଧି ଗଣ୍ଠିଲି କଲା । ନିଜେ ପୁରୁଷ ବେଶ ହେଲା । ଗଣ୍ଠିଲି-ଟିକୁ ଗୈରୁର ମାଈ ଗଧ ଉପରେ ଲଦି ନିଜ ଘରକୁ ଚାଲିଲା ।

ଏଣେ ଚୋରଟି ବାହାଘର ପାଇଁ ବହୁତ ଜିନିଷ କିଣିଲା । ତାକୁ ଧରି ଘରକୁ ସେ ଫେରୁଥାଏ ।

ବାଟରେ ଉଭୟଙ୍କର ଦେଖା । ବାଟୋଇକୁ ଦେଖି ଚୋର ମନରେ ସନ୍ଦେହ ବହୁତ । ତେଣୁ ସେ ଗୁଣି ହେଲା—"ଏ ତ ଦେଖିବାକୁ ଠିକ୍ ମୋ ସ୍ତ୍ରୀ ଭଳି । ଗଧଟି ବି ଏକବାରେ ମୋ ଗଧ ପରି । ଏ ବାଟୋଇଟି କିଏ ?"

ଏ କଥା ଶୁଣି ବାଟୋଇଟି ହଠାତ୍ ଧମକ ଦେଇ କହିଲା—"ତମ ମୁଣ୍ଡ ଖରାପ କି ? କ'ଣ ଗୁଡ଼ା ତମେ ଗପୁଛ ?"

ଚୋରଟି ବାଟୋଇ କଥା ଶୁଣି ଗୁମନିଆ । ପାଟିରୁ କଥା ବାହାରିଲା ନାହିଁ । ସେ ଅପ୍ରସ୍ତୁତ ଭାବରେ କହିଲା—"ଆଜ୍ଞା ! ମୁଁ ଆପଣଙ୍କୁ କିଛି କହୁନାହିଁ । ମୁଁ ମୋ ଘରକୁ ଯାଉଛି ।"

ଏହିପରି ଭାବରେ ଚତୁରୀ ବୋହୂଟି ଘରକୁ ଫେରି ଆସିଲା । ସାଥିରେ ତାର ଚୋରର ସମସ୍ତ ଧନସମ୍ପତ୍ତି ।

# ବଳ୍ର ବଡ଼ ମଧୁର

## (ଗୁକ୍ସା ଲୋକ କଥା)

ବୁଢ଼ୀଟିଏ । ତାର ଗୋଟିଏ ବୋଲି ପୁଅ । ତା ନାଁ ପ୍ରସାଦ । ସେ କିନ୍ତୁ ଭାରି ବୋକା ।

ବୁଢୀ ଦିନେ ପୁଅକୁ କହିଲା—"ପୁଅରେ ମୁଁ ବୁଢ଼ୀ ହୋଇ ଗଲିଣି । କାମକୁ ଆଉ ପାରୁ ନାହିଁ । ବୋହୂ ତାର ବାପଘରେ । ତୁ ଯାଇ ତାକୁ ନେଇଆ । ସେ ଆସିଲେ ମୋ ସାଥିରେ ଘର କାମ କରିବ । ମୋତେ ଟିକିଏ ଉଶ୍ୱାସ ହୋଇଯିବ ।"

ପ୍ରସାଦ ତା ମାଆ କଥାରେ ରାଜି । କିନ୍ତୁ ଶ୍ୱଶୁର ଘର ବହୁତ ଦୂର । ସେ କେମିତି ଯିବ, ସେଇଟା ତାର ଚିନ୍ତା । ମା କହିଲା— "ସେଥିପାଇଁ, ତୁ କିଛି ଭାବନାହିଁ । ମୁଁ ରାନ୍ଧିକରି ଖାଇବା ଜିନିଷ ଦେଇଦେଉଛି । ଯେଉଁଠି ଖାଇବା ଜିନିଷ ସରିଯିବ, ତୁ ରାତିଟା ସେଇଠି ରହିଯିବୁ ।"

ପ୍ରସାଦ ଖାଇବା ଜିନିଷତକ ଧରି ସକାଳୁ ସକାଳୁ ଘର ବାହାରି ପଡ଼ିଲା । ପାଖରେ ତ ଖାଇବା ଜିନିଷ । ମନ ତାର ସେଇଠି । ତେଣୁ ଘରୁ ଗୁଡ଼ୁଗୁଡ଼ୁ ଖାଇବା ଜିନିଷ ପାଟିରେ ପକାଇବାକୁ ସେ ଆରମ୍ଭ କରିଦେଲା । ଗାଁ ମୁଣ୍ଡରେ ପହଞ୍ଚିଲା ବେଳକୁ ଖାଦ୍ୟଶେଷ । ସେ ରାତିଟି ସେଇଠି ରହିଲା । ପର ଦିନ ସକାଳେ ଘରେ ହାଜର । ମା ଦେଖି ଆଶ୍ଚର୍ଯ୍ୟ । ଏତେ ସକାଳୁ କେମିତି ଆସିଲୁ ବୋଲି

ପଚାରିଲା । ପ୍ରସାଦ କହିଲା "ମୁଁ ତ ଶ୍ୱଶୁରଘରକୁ ଯାଉନାହିଁ । ଗାଁ। ମୁଣ୍ଡରେ ଖାଦ୍ୟ ସରିଗଲା । ସେଇଠି ରାତିରେ ରହିଲି । ସକାଳୁ ଫେରି ଆସିଲି ।"

ବୁଢ଼ୀ ମୁଣ୍ଡରେ ହାତ ଦେଲା । ତାପରେ, ବୁଢ଼ୀ ବହୁବାର ପ୍ରସାଦକୁ ତାର ଶ୍ୱଶୁର ଘରକୁ ପଠାଇଛି । ହାତରେ ତାର ଖାଇବା ଜିନିଷ ବି ଦେଇଥାଏ । କିନ୍ତୁ ସବୁଥର ସେ ଫେରିଆସେ । ସେଇ ଏକା ଉତ୍ତର ତାର । 'ଖାଇବା ଜିନିଷ ସରିଗଲା । ତେଣୁ ଫେରି ଆସିଲି ।'

ପୁଅର ଏ ଢ଼ଙ୍ଗ ଦେଖି ବୁଢ଼ୀ ଚିନ୍ତିତ, ବ୍ୟଥିତ । ବିବ୍ରତ ବି । ଭାବେ—ଏ ପୁଅ କେମିତି ବୋହୂକୁ ଆଣି ଘର କରିବ ।

ଶେଷକୁ ବୁଢ଼ୀକୁ ଗୋଟିଏ ଉପାୟ ଦିଶିଲା । ସେ ଚନା ସିଝା ଗୋଟିଏ ଠେକାରେ ଭର୍ତ୍ତିକଲା । ଠେକାଟିକୁ ପ୍ରସାଦ ବେକରେ ଝୁଲାଇ ଦେଲା । ତାପରେ ପ୍ରସାଦକୁ କହିଲା "ଏଥିରେ ଆଙ୍ଗୁଠି ବୁଡ଼େଇ ଗୋଟି ଗୋଟିଯିବୁ । ତାହାହେଲେ, ବାଟ ଜଣାପଡ଼ିବ ନାହିଁ ।

ପ୍ରସାଦ ଘରୁ ବାହାରିଗଲା । ବାଟଯାକ ସିଝାରେ ଆଙ୍ଗୁଠିଟିକୁ ବୁଡେଇ ସେ ଗୋଟୁଥାଏ । ଏମିତି ଯାଉ ଯାଉ ସେ ଶ୍ୱଶୁର ଘରେ ପହଞ୍ଚିଗଲା । ସେଠି ପହଞ୍ଚି ଲୁଗାଟିଏ ବେକ ଚାରିପଟେ ଗୁଡ଼େଇ ଦେଲା, ଯେମିତିକି ଠେକାଟି କାହା ନଜରରେ ପଡ଼ିବ ନାହିଁ ।

ପ୍ରସାଦକୁ ଶ୍ୱଶୁର ଘରେ ଖାଇବାକୁ ଡାକଲେ । ସେ କିନ୍ତୁ ମନା କଲା । ରାତିରେ ତା ସ୍ତ୍ରୀ ଆସି ତାକୁ ଶୋଇବାକୁ କହିଲା । ସେ ସେମିତି ବସିଥାଏ । ସେଠୁ ଜମା ଉଠିଲା ବି ନାହିଁ । ଏଥିରେ ତା ସ୍ତ୍ରୀ ଖୁବ୍ ରାଗିଗଲା । ଗାଳୁ ଗାଳୁ ହେଲା, ମୁଁ ତାକୁ ଶୋଇବାକୁ କହୁଛି, ଅଥଚ ସେ ଶୋଇବାକୁ ଯାଉନାହାନ୍ତି ।

ପ୍ରସାଦୀ ଠେକଆଡ଼କୁ ଆଙ୍ଗୁଠିଟି ଦେଖାଇ କହିଲା—"ଏଇ ମୋତେ ଶୁଆଇ ଦଉନାହିଁ କି ଖୁଆଇ ଦେଉନାହିଁ ।"

"ଯାଅ, ବାହାର ଖୁଣ୍ଟରେ ତାକୁ ବାଡ଼େଇ ଭାଙ୍ଗି ଦିଅ ।" ସ୍ତ୍ରୀ ତାର ଜବାବ ଦେଲା ।

ପ୍ରସାଦୀ ତା ବେକରୁ ଦଉଡ଼ିଟି ଖୋଲିଦେଇ ଠେକଟିକୁ ବାହାର କରିଦେଲା । ସେତେବେଳକୁ ଅନ୍ଧାର ମୁହଁକୁ । ମୁହଁ ଦିଶୁନଥାଏ । ବାହାରେ ପ୍ରସାଦୀର ଶ୍ୱଶୁର ଠିଆ ହୋଇଥାଏ । ପ୍ରସାଦୀ ତାକୁ କାଠ ଖୁଣ୍ଟ ବୋଲି ଭାବି, ତା ମୁଣ୍ଡରେ ଠେକଟିକୁ ବାଡ଼େଇ ଦେଲା ।

ହଠାତ୍ କ'ଣ ହେଲା, ବୁଢାଟି ଜାଣିପାରିଲା ନାହିଁ । ସେ ଚିତ୍କାର କରି କହିଲା—"ମୋ ମୁଣ୍ଡରେ ବଜ୍ର ପଡ଼ିଗଲା ।"

ବୋକା ପ୍ରସାଦୀ ଏ ସବୁ ଦେଖି ଭୁଆଁ । ସେ ତା ସ୍ତ୍ରୀ ପାଖକୁ ଧାଇଁଯାଇ ସବୁକଥା କହିଲା ।

"ଚୁପ ରହ । ଏ ବିଷୟରେ କିଛି କହ ନାହିଁ ।" ସ୍ତ୍ରୀଟି କହିଲା ।

ବର୍ତ୍ତମାନ ବୁଢ଼ାର ମୁଣ୍ଡରୁ ପାଚିଦେଇ ସିରିଗୁଡ଼ାକ ବୋହିଲାଣି । ସେ ତାକୁ ଗୃହିଁ ପକାଇଲା ।

ବୁଢ଼ା ବଡ଼ ପାଟିରେ ଘର ଲୋକଙ୍କୁ କହିଲା—"ଆରେ ଏ ବଜ୍ରଟା ଭାରି ମଧୁର ।"

***

# ଦୁଆର ବି କାନ ଅଛି

(ଥାରୁ ଲୋକକଥା)

ପୂର୍ବ କାଳରେ ଜଣେ ରାଜା ଥିଲେ । ତାଙ୍କର ଚାରିଟି କାନ । ତାକୁ ଲୁଚାଇବା ପାଇଁ ସବୁବେଳେ ସେ ପଗଡ଼ିଟିଏ ପିନ୍ଧିଥାଆନ୍ତି । ସେ ପଗଡ଼ିଟି କେବେ ହେଲେ ବାହାର କରନ୍ତି ନାହିଁ ।

ଦିନେ ରାଜା ଜଙ୍ଗଲକୁ ଶିକାର କରିବାକୁ ଯାଇଥିଲେ । ସାଥିରେ ମନ୍ତ୍ରୀ । ଘୋଡ଼ାଟି ରାଜା ଜୋରରେ ଛୁଟାଇଥାନ୍ତି । ହଠାତ୍ ରାଜାଙ୍କର ପଗଡ଼ିଟି ଗଛରେ ଲାଗିଗଲା । ରାଜା ଚାଲିଗଲେ ସିନା ଆଗକୁ । କିନ୍ତୁ ପଗଡ଼ି ଲାଗି ରହିଗଲା ଗଛରେ । ରାଜାଙ୍କ ମୁଣ୍ଡ ତ ଖାଲି । ଚାରିକାନ ତାଙ୍କର ଦେଖାଗଲା । ମନ୍ତ୍ରୀ ତାକୁ ଦେଖିଦେଲେ ।

ରାଜାଙ୍କର ସବୁ ପରିଶ୍ରମ ପଣ୍ଡ । ଏତେଦିନର ଲୁଚାଇ ରଖିବାର ଉଦ୍ୟମ ଆଜି ବୃଥା । ସବୁ କଥା ଆଜି ପଦାରେ ପଡ଼ିଗଲା । ଏଥିପାଇଁ ରାଜା କ୍ଷୁବ୍ଧ । ଅପ୍ରସ୍ତୁତ ବି । ତାଙ୍କୁ ଖୁବ୍ ଖରାପ ଲାଗିଲା । ସେ ଭାବିଲେ ଯାହାହେଉ କଥାଟା କିପରି ପଦାକୁ ନଯାଉ । ସେଥି-ପାଇଁ ସେ ସ୍ଥିର କଲେ ମନ୍ତ୍ରୀଙ୍କୁ ଦାବି ଦେଲେ କଥାଟା ପ୍ରଘଟ ହେବ ନାହିଁ । ତେଣୁ ସେ ମନ୍ତ୍ରୀଙ୍କୁ କହିଲେ "ଖବରଦାର, ମୋ ଚାରିକାନ କଥା ବାହାରେ ପ୍ରକାଶ କରିବ ନାହିଁ । କଲେ, ତମ ବଂଶ ମୁଁ ନପାତ କରିଦେବି ।"

ମନ୍ତ୍ରୀ ଏକେ ତ ଅସମ୍ଭବ କଥାଟିଏ ଦେଖିଲେ । ବିଶେଷରେ ପ୍ରକାଶ କରିବାକୁ ମନା ହେଲା । ତାଙ୍କୁ ଏସବୁ ଅଡୁଆ ଲାଗିଲା । ସେଥିପାଇଁ କଥାଟା ପ୍ରକାଶ କରିବାକୁ ତାଙ୍କର ଘୋର ଇଚ୍ଛା । କିନ୍ତୁ ଭୟ—କାଳେ କହିଦେଲେ, ରାଜା ଜାଣିବେ । ସର୍ବନାଶ ହେବ । ତେଣୁ ଭୟରେ ସେ ଏକଥା କାହାକୁ କହନ୍ତି ନାହିଁ ।

ଦିନପରେ ଦିନ ଗଡ଼ିଚାଲିଲା । କଥାଟି ସିନା ଚାପି ରଖିଲେ, କିନ୍ତୁ ମନ୍ତ୍ରୀଙ୍କ ମନରେ ଶାନ୍ତି ରହିଲା ନାହିଁ । ସବୁବେଳେ ମନ ଖାଲି ହନ୍ତସନ୍ତ । କୌଣସି କାମରେ ମନ ଲାଗେ ନାହିଁ । ସବୁବେଳେ ମନେପଡ଼େ—ରାଜାଙ୍କର ଚାରି କାନ । ସେ ବହୁତ ବ୍ୟସ୍ତବ୍ୟସ୍ତ ହୋଇ ପଡ଼ିଲେଣି । ଭାବିଲେ କଥାଟା ପ୍ରକାଶ ନକଲେ, ନିସ୍ତାର ନାହିଁ ।

ଦିନେ ସେ ଯାଉଥିଲେ । ବାଟରେ କୂଅଟିଏ ନଜରରେ ପଡ଼ିଲା । ଜାଗାଟି ସମ୍ପୂର୍ଣ୍ଣ ନିଛାଟିଆ । ଭାବିଲେ କଥାଟି ସିନା ମଣିଷଙ୍କୁ କହିବାକୁ ମନା—କିନ୍ତୁ କୂଅକୁ କହିଲେ କ୍ଷତି କ'ଣ ? କୂଅ ତ କାହାକୁ କହିବ ନାହିଁ । ପ୍ରଘଟରେ ପ୍ରଶ୍ନ କାହିଁକି ଉଠୁଛି । ତେଣୁ, ସେ କୂଅ ଭିତରକୁ ମୁହଁ କରି କହିଲେ—"ଆମ ରାଜାଙ୍କର ଚାରିଗୋଟି କାନ ।" ମନର କଥା ପ୍ରକାଶ କରିବାରୁ ମନ୍ତ୍ରୀ ବର୍ତ୍ତମାନ ଆଶ୍ୱସ୍ତ । ସୁସ୍ଥ । ତାଙ୍କ ମୁଣ୍ଡ ଉଶ୍ୱାସ ହୋଇଗଲା । ଦୈନନ୍ଦିନ କାମ ସୁରୁଖୁରୁରେ ଏଥର ମାରିଲେଣି । ଇତି ମଧ୍ୟରେ ବର୍ଷଟିଏ ବିତିଗଲା । କୂଅ ଭିତରେ ଥିବା ଗଛଟି ଏବେ ଦ୍ରୁମ । ତାକୁ ବଢ଼େଇଟିଏ କାଟିନେଇ ତାବଲା, ସାରଙ୍ଗୀ ଓ ଧୁଡୁକି କରିଲା । କିନ୍ତୁ ତାକୁ ବଜାଇବା ମାତ୍ରେ ଶବ୍ଦ ବାହାରେ 'ଆମ ରାଜାଙ୍କର ଚାରିକାନ' ।

ଜଣେ ଗାୟକ ସେ ସବୁ ବାଦ୍ୟଯନ୍ତ୍ର କିଣିନେଲା । ନୂଆ ବାଦ୍ୟ ଯନ୍ତ୍ର ରାଜାଙ୍କ ଆଗରେ ବଜାଇବ, ମୋଟା ପାରିତୋଷିକ ପାଇବ

ଏହାହିଁ ଥିଲା ଗାୟକର ବିଶ୍ୱାସ । ତେଣୁ ସେ ରାଜଦରବାରକୁ ଗଲା । ସେ ରାଜାଙ୍କ ଆଗରେ ବାଦ୍ୟଯନ୍ତ୍ର ବଜାଇଲା । ଆଶ୍ଚର୍ଯ୍ୟ । ଯାହା ବଜାଉଥିଲା, ତା ତ ବାଜିଲା ନାହିଁ । ଖାଲି ସବୁଥିରୁ ଶବ୍ଦ ବାହାରିଲା "ଆମ ରାଜାଙ୍କର ଚାରିକାନ ।"

ରାଜା ଏହା ଶୁଣି କ୍ଷୁବ୍‌ଧ । କ୍ରୋଧାନ୍ୱିତ । ରାଜାଦେଶରେ ଗାୟକକୁ କଏଦଖାନାରେ ରଖାଗଲା । ଗାୟକ ତାର ଭାଗ୍ୟର ବିଡ଼ମ୍ବନା ପାଇଁ ବିବ୍ରତ । ବ୍ୟସ୍ତ । ଯେତେ ଚେଷ୍ଟାକଲା, କାରଣ ବି ବୁଝି ପାରିଲା ନାହିଁ । ରାଜା ସେତିକରେ ସନ୍ତୁଷ୍ଟ ହେଲେ ନାହିଁ । ମନ୍ତ୍ରୀଙ୍କର ପରିବାରକୁ ଧରି ଆଣିଲେ । ରାଜାଙ୍କ ଆଦେଶରେ, ସେମାନଙ୍କୁ ବଳଦଟଣା ପେଷଣ ଆଗରେ ପକାଇ ପେଷି ଦିଆଗଲା ।

ମନ୍ତ୍ରୀ ବର୍ତ୍ତମାନ ଏକାକୀ । ସେ ସବୁବେଳେ ଚିନ୍ତା କରନ୍ତି— "ସତରେ କ'ଣ କୁଅର କାନଅଛି ?"



# ଚତୁର ଠେକୁଆ

( ଥାରୁ ଲୋକ କଥା )

ବାଘଟିଏ ବୁଢ଼ା ହୋଇଗଲା । ଏଥର ଶିକାର କରିବାକୁ ସେ ଅକ୍ଷମ । ତେଣୁ, ତାର ବଞ୍ଚିରହିବା ପାଇଁ ପ୍ରତିଦିନ ପଶୁଟିଏ ଦରକାର । ସେ ତ ଜଙ୍ଗଲର ରାଜା । ଜଙ୍ଗଲର ସବୁ ପଶୁମାନଙ୍କୁ ଆଦେଶ ଦେଲା, ସବୁଦିନ ପାଳିକରି ଗୋଟିଏ ପଶୁ ତା ନିକଟକୁ ଆସିବେ । ତାକୁ ସେ ଖାଇବ ।

ପଶୁରାଜଙ୍କର ଆଦେଶ । ଶିରୋଧାର୍ଯ୍ୟ । ଅମାନ୍ୟ କରିବାକୁ କାହାର ସାହସ କୁଳାଇଲା ନାହିଁ । ତେଣୁ ପ୍ରତିଦିନ ପାଳିକରି ଜଣେ ଲେଖାଏଁ ପଶୁ ଆସନ୍ତି । ତାଙ୍କୁ ବାଘଖାଏ । ଏମିତି କିଛିଦିନ ଚାଲିଗଲା ।

ସେଦିନ ଠେକୁଆର ପାଳି । ବାଟରେ ସେ ମନ ଦୁଃଖରେ ଚାଲିଥାଏ । କୂଅଟିଏ ଦେଖି ଅଟକିଗଲା । କୂଅ ଭିତରକୁ ଉଣ୍ଡିଲା । ପାଣିରେ ତାର ନିଜର ପ୍ରତିବିମ୍ବ । ଛାଇଟି କିନ୍ତୁ ତା ଆକାରଠୁ ଆହୁରି ବଡ଼ ଜଣାପଡ଼ିଲା । ଠେକୁଆଟି ଟିକିଏ ଚମକିତ । ଟିକିଏ ସେଠି ରହି କ'ଣ ଭାବୁଥିଲା । ତାପରେ ପୁଣି ଡେଇଁ ଡେଇଁ ବାଘ ପାଖକୁ ଚାଲିଲା । ଠେକୁଆଟି ବାଘ ନିକଟରେ ପହଞ୍ଚିଲା ସତ, କିନ୍ତୁ ଟିକିଏ ଡେରିରେ । ସେଥିପାଇଁ ବାଘ ରାଗିକରି ଅସ୍ଥିର । ଠେକୁଆକୁ ଦେଖି ଗର୍ଜି ଉଠି କହିଲା —"ତୋର ଏତେ ଡେରି କାହିଁକି ?"

ଠେକୁଆଟି ବାଘର ଗର୍ଜନ ଶୁଣି ସ୍ଥାନୁଆ । ଭୟରେ ସେ ଥରହର । ଡର ଡର କହିଲା "ହଜୁର ! ବାଟରେ ଗୋଟିଏ ବାଘକୁ ଭେଟିଲି । ସେ ଆପଣଙ୍କଠାରୁ ଆହୁରି ବଡ଼ । ସେ ମୋତେ ଅଟକାଇ ଦେଲେ । ସେଥିପାଇଁ ମୋର ଡେରି ହୋଇଗଲା ।"

ବାଘ ଏକଥା ଶୁଣି ରାଗରେ ନିଆଁ । କହିଲା—"କାହିଁ ସେ ବାଘ ? ମତେ ତା ପାଖକୁ ନେଇଚାଲ ।"

ଠେକୁଆଟି ଆଗେ ଆଗେ । ପଛରେ ବାଘ । କୂଅପାଖରେ ପହଞ୍ଚିଗଲେ । ଏଥର ଠେକୁଆ କୂଅ ଭିତରେ ଥିବା ପାଣିକୁ ଦେଖାଇ ଦେଲା । ବାଘ ଉଣ୍ଡିଲା କୂଅ ଭିତରକୁ । ପାଣିରେ ଦେଖିଲା ନିଜର ପ୍ରତିବିମ୍ବ । ତାହା ତାଠାରୁ ବଡ଼ ଏବଂ ଭୟଙ୍କର । ବାଘଟା ସବୁଠାରୁ ବଡ଼ବୋଲି ତାର ଗର୍ବ । ସେ ଗର୍ଜନ କଲା । କୂଅଭିତରୁ ତାର ପ୍ରତିଧ୍ୱନି ଆହୁରି ବିକଟାଳ ଶୁଣାଗଲା । ବାଘ ପାଇଁ ଏତିକି ଯଥେଷ୍ଟ । ସେ କି ଆଉ ସମ୍ଭାଳି ପଡ଼େ ? ବାଘଟି କୂଅଭିତରକୁ ଝୁଣ୍ଟ୍‌କିନେ ଡେଇଁପଡ଼ିଲା ।

—*—

# ସୁନା ପୋଖରୀର ଅଦ୍ଭୁତ ଶକ୍ତି

( ଥାରୁ ଲୋକ କଥା )

ଜଣେ ରାଜାଥିଲେ । ତାଙ୍କର ସାତପୁଅ । ବଡ ଛ’ ଜଣ ବିବାହିତ । ସାନଟି ବାଉଳା ।

ରାଜା ଏବେ ଖୁବ୍ ବୁଢ଼ା । ଆଖିରେ ତାଙ୍କର ଅଚହ୍ଲା ରୋଗ । ଯନ୍ତ୍ରଣା ଅସହ୍ୟ । ମର୍ମନ୍ତୁଦ । କଷ୍ଟରେ ସେ ଅସ୍ଥିର । ଛଟପଟ ହୁଅନ୍ତି । ଯେତେ ଯାହା କଲେ, ରୋଗ କମେ ନାହିଁ । ବରଂ ଦିନକୁ ଦିନ ବଢ଼େ । ଅବସ୍ଥା ତାଙ୍କର ଅସମ୍ଭାଳ । ବେଳେବେଳେ ଜୀବନ ହାରିବାକୁ ଭାବନ୍ତି ।

ଶେଷରେ ରାଜା ଦିନେ ପୁଅମାନଙ୍କୁ ଡାକି କହିଲେ—“ମୋ ଆଖି ମତେ ଖୁବ୍ କଷ୍ଟ ଦେଉଛି । ତମେମାନେ କେହି କିଛି କଲ ନାହିଁ । ଏଥିରୁ ମତେ ଯେ ରକ୍ଷା କରିବ, ମୋ ଅନ୍ତେ ସେ ରାଜା ହେବ ।”

ବଡ଼ପୁଅମାନେ ରାଜାଙ୍କ ଆଖି ପାଇଁ ବ୍ୟସ୍ତ ନୁହଁନ୍ତି । ସେମାନେ ସିଂହାସନ ପାଇଁ ବ୍ୟାକୁଳ । ବାପାଙ୍କ କଥା ଶୁଣି ସେମାନେ ଉଚ୍ଛନ୍ନ । ପ୍ରତିଯୋଗିତା ଆରମ୍ଭ ହୋଇଗଲା । ସମସ୍ତେ ଗଲେ ଜଙ୍ଗଲକୁ । ପୂରା ଜଙ୍ଗଲଟା ସେମାନେ ଘାଣ୍ଟି ପକାଇଲେ ସତ, କିନ୍ତୁ ଔଷଧଗଛ ପାଇଲେ ନାହିଁ । ଶେଷକୁ ନିରାଶ ହୋଇ ଫେରିଆସିଲେ ।

